# ଆଖଣ୍ଡଳମଣି

(ଗୀତିନାଟ୍ୟ)

ଲେଖକ—**କୃତ୍ତିବାସ ନାୟକ**, ଏମ୍. ଏ.
ମୁଖ୍ୟ ସମ୍ପାଦକ—**ଶିଶୁ ସ୍ୱଛକ**
ଜୟପୁର ଜଳସେଚନ କଲୋନୀ

ପ୍ରକାଶକ **ସୁଧାଂଶୁ ପ୍ରକାଶନ**, କଟକ-୯

ପରିବେଷକ **ଗୁରୁଜୀ ବୁକ୍ ଷ୍ଟୋର**
ଝାଞ୍ଜିରି ମଙ୍ଗଳା, କଟକ-୯

ପ୍ରଥମ ପ୍ରକାଶ—ଶିବରାତ୍ରୀ ୧୯୮୬

ମୂଲ୍ୟ—**ଦୁଇ ଟଙ୍କା ମାତ୍ର**

# ନାଟକ ସଂପର୍କରେ ପଦେ···

ଓଡ଼ିଶାର ବିଖ୍ୟାତ ଶୈବପୀଠ ଆରଡ଼ି ଧାମର ମହିମା ବିଷୟରେ ପାଠକଙ୍କର ନିଶ୍ଚୟ କିଛିତ ଧାରଣା ଥିବ । ଠାକୁରଙ୍କର ଆବିର୍ଭାବ ସମ୍ପର୍କରେ କିନ୍ତୁ ବହୁତ ଲୋକଙ୍କର ଧାରଣା ନ ଥିବ । ଏଥିରେ ଯେଉଁ କାହାଣୀଟିକୁ ଖଞ୍ଜା ଯାଇ ନାଟକ ରଚନା କରାଯାଇଛି, ତାହା ବ୍ରହ୍ମ ପୁରାଣରେ ପରିଷ୍କାର ଭାବେ ରହିଛି । ଅଧ୍ୟାପକ ବଂଶୀଧର ବିଶ୍ୱାଳଙ୍କର ଗବେଷଣା-କୃତ ପୁସ୍ତକ ମଧ୍ୟ ମୋତେ ନାଟକ ଲେଖିବାବେଳେ ସାହାଯ୍ୟ କରିଛି । ନାଟକଟିକୁ ରସାଳ ଓ ସ୍ୱାଦଯୁକ୍ତ କରିବା ପାଇଁ କେତେକ କଳ୍ପନା ମଧ୍ୟ ଯୋଗ କରାଯାଇଛି । ମୂଳ କାହାଣୀଟିକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଯଥାସମ୍ଭବ ଯତ୍ନ କରିଛି । ଯେଉଁସବୁ ପୁସ୍ତକର ସହାୟତା ନେଇଛି, ତା'ର ଲେଖକ ଓ ପ୍ରକାଶକଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଛି ।

ଆଖଣ୍ଡଳମଣିଙ୍କ ସମ୍ପର୍କରେ ଆଉ ଏକ ପୂର୍ଣ୍ଣାଙ୍ଗ ମଞ୍ଚ ଉପଯୋଗୀ ନାଟକ ମୋର ପ୍ରକାଶ ପାଇଛି । ସେହିପରି ବେତାର ଉପଯୋଗୀ କରାଯାଇ ଦୃଶ୍ୟ ନାଟକ ମଧ୍ୟ ଏହି ନାଟକ ସଙ୍ଗେ ପ୍ରକାଶ ପାଉଛି ।

ନାଟକ ମାଧ୍ୟମରେ ଠାକୁରଙ୍କର ଇତିହାସ ପାଠକ, ଦର୍ଶକମାନେ ଜାଣିପାରିବେ ବୋଲି ମୋର ବିଶ୍ୱାସ । ଏହି ଗୀତିନାଟ୍ୟଟିକୁ ଯେଉଁମାନେ ମଞ୍ଚସ୍ଥ କରିବେ, ତାଙ୍କ ପାଖରେ ମୋର ନିବେଦନ ସେମାନେ ଲେଖକଙ୍କ ଠିକଣାରେ ଜଣାଇଲେ ମୁଁ ଖୁସି ହେବି । ଇତି ।

ବିନୀତ ଲେଖକ

**କୃତ୍ତିବାସ ନାୟକ**



## ପ୍ରଥମ ଦୃଶ୍ୟ

[ବୃତ୍ରାସୁର ଦୂତମାନଙ୍କ ସହ କଳକଳା ନାଦ କରି ହସି ଉଠିଲେ । ହଠାତ୍ ବୃତ୍ରର ଗର୍ଜନରେ ଅନ୍ୟମାନେ ନୀରବ ହେଲେ ।]

ବୃତ୍ରାସୁର—ମହାଶକ୍ତି ମହାମାୟା ଦେଇଛନ୍ତି ବର
ତା'ର ବଳେ କରିବ ମୁଁ ସ୍ୱର୍ଗ କରାୟତ୍ତ ।

(ଗୀତ) ଶୁଣି ନଅ ଷଣ୍ଡା ମିତ୍ର ଧୂମାସୁର
ଦେବତା ଛାଡ଼ିବେ ସ୍ୱର୍ଗପୁର,
ଉର୍ବଶୀ ମେନକା ନାଚିବେ ମୋ ଆଗେ
ଇନ୍ଦ୍ରାଣୀ ମଣ୍ଡିବ କୋଳ ମୋର ।୧।

ଷଣ୍ଡାସୁର—(ଗୀତ) ଆଣି ଦେବି ମୁହିଁ ହସ୍ତି ଐରାବତ,
ଉଚ୍ଚୈଶ୍ରବା ଅଶ୍ୱ, ପାରିଜାତ

ଧୂମାସୁର—(ଗୀତ) ନନ୍ଦନ କାନନ କରି ଛିନ୍ନଭିନ୍ନ
ଆଣି ଦେବି ଇନ୍ଦ୍ରାଣୀର କର ।୧।

ଷଣ୍ଡାସୁର—(ଗୀତ) ବାନ୍ଧି ଆଣିବି ମୁଁ ଦେବରାଜ ଇନ୍ଦ୍ର,
ଶରଣ ପଶିବେ ସୂର୍ଯ୍ୟ ଚନ୍ଦ୍ର

ଧୂମାସୁର—(ଗୀତ) ଦେବତା ଖଟିବେ, ବୃତ୍ରାସୁର ପଦେ
ଏକଥା ଅନ୍ୟଥା ନୁହେଁ ମୋର ।୨।

(ହେଃ-ହେଃ-ସବୁ ଅସୁର ହସିଲେ)

ବୃତ୍ରାସୁର—ଧନ୍ୟ । ଧନ୍ୟ ତୁମେ ମିତ୍ର ଦୁଇ ଷଣ୍ଢା-ଧୂମାସୁର ।
ବାହୁ ବଳେ କରିଅଛ ତ୍ରିଭୁବନ ଜୟ । ଆଜ ନିଶ୍ଚେ
ସ୍ୱର୍ଗପୁର ହୋଇବ ଆମର । (ହୋଃ-ହୋଃ-ହସି
ହଠାତ୍ ବନ୍ଦ)

ଷଣ୍ଢାସୁର—କ'ଣ ହେଲା ପ୍ରଭୁ । ଏମିତି ନୀରବ ରହିଗଲେ
ଯେ ?

ବୃତ୍ରାସୁର—ମନେ ପଡ଼ିଯାଏ ମୋର ବିଶ୍ୱାମିତ୍ର ବାଣୀ
ମହାମୁନି ବିଶ୍ୱାମିତ୍ର କହିଥିଲେ ମୋତେ
ଜିତେନ୍ଦ୍ରିୟ ହେବୁ ଯିବା ଯିବୁ ନାହିଁ ସ୍ୱର୍ଗ
ସ୍ୱର୍ଗ ଗଲେ ମୃତ୍ୟୁ ନିଶ୍ଚେ ହୋଇବ ମୋହର ।
ହାଃ-ହାଃ-ହାଃ
କୁହ ମିତ୍ର ! ସ୍ୱର୍ଗ ବିନା ସୁଖ ଅବା
ଅଛି ଆଉ କିଛି ?
ନାଁ—ମାନିବିନି ବୃଦ୍ଧ ଭଣ୍ଡ ତପସ୍ୱୀର ବାଣୀ ।

ଧୂମାସୁର—ସତ୍ୟ । ସ୍ୱର୍ଗ ଯାତ୍ରା ବିନା ଆଉ ନାହିଁ ଗତି
ସାର୍ଥକ ହେବନି ଆମ୍ଭ ଅସୁର ଜୀବନ ।

ଷଣ୍ଢାସୁର—ସ୍ୱର୍ଗ ଯାତ୍ରା ହେଉ ତେବେ ନ କର ବିଳମ୍ବ ।

ବୃତ୍ରାସୁର—ଶତସିଂହ ବଳ ନେଇ କର ସ୍ୱର୍ଗ ଜୟ
ହଟାଇ ଦେବତାଗଣ ଦିଅ ପରାଭବ ।

(ସମସ୍ତେ ଗର୍ଜନ ସହ ପ୍ରସ୍ଥାନ)

—ଯୁଦ୍ଧ ବାଦ୍ୟ—

# ଦ୍ୱିତୀୟ ଦୃଶ୍ୟ

## ଇନ୍ଦ୍ର ଭୁବନ

ନାରଦ—ନାରାୟଣ-ନାରାୟଣ (ପ୍ରବେଶ)

ଇନ୍ଦ୍ର—ଆସନ ଗ୍ରହଣ କରନ୍ତୁ ଦେବର୍ଷି । ତ୍ରିଭୁବନ ସମାଚାର କୁହନ୍ତୁ ବିସ୍ତାର ।

ନାରଦ—ସ୍ୱର୍ଗପୁରେ ପଡ଼ିଅଛି ଅକାଳ-ଚଡ଼କ
ଦେବଗଣେ ତ୍ରାଣ ଭୟେ ହୁଅନ୍ତି କାତର
ବୃତ୍ରାସୁର ସ୍ୱର୍ଗେ ପଶି କରେ ଛାରଖାର ।

ଇନ୍ଦ୍ର—କିଏ ସେହି ବୃତ୍ରାସୁର, କିବା ତା'ର ପରିଚୟ ?
(ଗୀତ) କିଏ ସେହି ବୃତ୍ରାସୁର
କରୁଛି ରଣ ହୁଙ୍କାର,
କେଉଁ ଦେବ ଶକ୍ତି ବଳେ
ଆସିଛି ସେ ସ୍ୱର୍ଗପୁର ?

ନାରଦ—(ଗୀତ) ମହାଦେବୀ ମହାମାୟା
ଶକତିରେ ବଳୀୟାନ,
ରାକ୍ଷସ ସେ ମହାବଳୀ
ଜାତିରେ ପୁଣି ବ୍ରାହ୍ମଣ ।

ଇନ୍ଦ୍ର—(ଗୀତ) ଦେବଗଣ ସୁଖ ପାଇଁ
ଦେବି ପଛେ ପ୍ରାଣ ମୋର,
ପାପିଷ୍ଠକୁ ଦେବି କଷ୍ଟ
ରଖିବି ମୁଁ ସ୍ୱର୍ଗପୁର ।

ନାରଦ—(ଗୀତ) ବ୍ରହ୍ମ ହତ୍ୟା ଦୋଷ ପାଇଁ
ହେଇଥିବ ସାବଧାନ,
ନାରଦର କଥା ଯାଏ—
ନାରାୟଣ ନାରାୟଣ ।
(ବୀଣାର କରୁଣ ଝଙ୍କାର) [ପ୍ରସ୍ଥାନ]

## ତୃତୀୟ ଦୃଶ୍ୟ

ବୃତ୍ରାସୁର—( ଗର୍ଜି ) କାହିଁ, କାହିଁ ମୋ' ଅଙ୍କଶାୟିନୀ ସୁନ୍ଦରୀ
ଇନ୍ଦ୍ରାଣୀ ?
କରି ତାକୁ ଗଳାହାର, ବସିବି ମୁଁ ଇନ୍ଦ୍ରର ଆସନେ ।

ଇନ୍ଦ୍ର—ଜାଣୁନା କରେ ଅସୁର ଏହା ସ୍ୱର୍ଗପୁର
ପାଞ୍ଜିରୁ ତୋ ନାମ ତେବେ ପୋଛିଲା କି ଯମ ?
(ଗୀତ) ଆରେ ଆରେ ଚଣ୍ଡ ମୂର୍ଖ ତୁ ପାଷାଣ୍ଡ
ଦେବଗଣେ କଲୁ ଲଣ୍ଡଭଣ୍ଡ,
କରି ଖଣ୍ଡ ଖଣ୍ଡ କାଟିବି ତୋ ମୁଣ୍ଡ—
ପାଇବି ପଛକେ ବ୍ରହ୍ମ ଦଣ୍ଡ (୦)

ବୃତ୍ରାସୁର—ହାଃ-ହାଃ-—
(ଗୀତ) ଆରେ ଦେବରାଜ ନାହିଁ ତୋତେ ଲାଜ
ଦେଖାଉଛୁ ବଡ ପଣ ଆଜ,
ନଗୃଉଛୁ ଭୁଜ ହେଉ ସଜବାଜ
ସ୍ୱର୍ଗପୁର ତେଜ ଇଷ୍ଟ ଭଜ । ହାଃ-ହାଃ
(ଯୁଦ୍ଧ ବାଦ୍ୟ)

ଇନ୍ଦ୍ର—ସମ୍ଭାଳ ଅସୁର ଏବେ ଛାଡ଼ିଲି ମୁଁ ବଜ୍ର ।

ବୃତ୍ରାସୁର—ଆଃ-ହା (ରଡ଼ ଛାଡ଼ି କଚାଡ଼ି ପଡ଼ିବା ଶବ୍ଦ)
ଆରେ ଆରେ ମୂର୍ଖ ଇନ୍ଦ୍ର, ବଜ୍ର ବାଣେ କଲୁ ମୋତେ
ମର୍ତ୍ତ୍ୟକୁ ପ୍ରେରଣ । କରୁଛି ଆହ୍ୱାନ, ପୁଣି ଥରେ ଆସି
କର ସମ୍ମୁଖ ସମର ।

ଇନ୍ଦ୍ର—ଧିକ୍ ଧିକ୍ ଏ ଜୀବନ ତୋର
ବଜ୍ରାଘାତେ ହସ୍ତପଦ ହରାଇଛୁ ତୁହି
ଲଜ୍ୟା ନାହିଁ ଆଉ ଥରେ ମାଗିବାକୁ ଯୁଦ୍ଧ ?

ବୃତ୍ରାସୁର—ଶୁଣ ଆରେ ଇନ୍ଦ୍ର । ପାଇଛି ମୁଁ ମହାଶକ୍ତି ଦୁର୍ଜ୍ଜ
ମହାମାୟା । ମାରି ନ ପାରିବୁ ମୋତେ ଆସି କର
ରଣ ।

ଇନ୍ଦ୍ର—ଦେବକୁଳ ହିତେ ତୋତେ କରିବି ମୁଁ ହତ୍ୟା
ବ୍ରହ୍ମହତ୍ୟା ଲାଗୁ ପଛେ ନାହିଁ ପଛଘୁଞ୍ଚା ।

(ଗୀତ) ଶୁଣ ଦୈତ୍ୟରାଣ ଦେଖାଉଛୁ ପଣ
ମରଣକୁ କରୁ ବରଣ,
ଛାଡ଼ିଲି ମୋ ବାଣ ନାଶିବ ପରାଣ
ଇଷ୍ଟ ଦେବ କର ସ୍ମରଣ ।
ଦେବାଦେବୀ ଗଣ ପାଇଲେ କଷଣ
ନ ମାନିଲୁ ଗୁରୁ ବାରଣ,
ନ ପଶିଲୁ ପୁଣ ଶ୍ରୀହରି ଶରଣ
ହେଲୁ ନିଜ ମୃତ୍ୟୁ କାରଣ ।
(ଯୁଦ୍ଧ ବାଦ୍ୟ)
—ନେ ସମ୍ଭାଳ ଅସୁର । ଛାଡ଼ିଲି ମୋ ବଜ୍ର ।

ବୃତ୍ରାସୁର—ଆଃ-ଆଃ (ବିକଟାଳ ରଡ଼ ଶୁଭିଲା)

ଦେବଗଣ—ସାଧୁ-ସାଧୁ ଦେବରାଜ ଇନ୍ଦ୍ର ।
ଦେବରାଜ ଇନ୍ଦ୍ରଙ୍କର ଜୟ ।
ଜୟ ଦେବରାଜ ଇନ୍ଦ୍ରଙ୍କର ଜୟ ।

## ଚତୁର୍ଥ ଦୃଶ୍ୟ

ନାରଦ—(ପ୍ରବେଶି) ନାରାୟଣ··ନାରାୟଣ ।

ଇନ୍ଦ୍ର—ଭଲ ସମୟରେ ତୁମେ ଆସିଛ-ଦେବର୍ଷି
ବ୍ରହ୍ମ ହତ୍ୟା ପାପ ମୋତେ ନ ଛାଡ଼େ ମୁହୂର୍ତ୍ତେ ।

ନାରଦ—ସେକଥା ମୁଁ ଜାଣିଛି ପୂର୍ବରୁ ।

ଇନ୍ଦ୍ର—ଉପାୟ ଏଥକୁ ମୋତେ ଦିଅନ୍ତୁ ବତାଇ
ଦେବକୁଳ ହିତେ ମୁହିଁ କରିଅଛି ପାପ ।

ନାରଦ—ଉପାୟ ନିଶ୍ଚୟ ଅଛି । ମନେରଖ ତେବେ ।
(ଗୀତ) ଏତ ବଡ଼ ଗହନ କଥା,
ଶୁଣିଲେ ତୁମର ଘୁରିବ ମଥା,
ବ୍ରହ୍ମ ହତ୍ୟା ଦୋଷ କାହାକୁ ନ ଛାଡେ
ମିଠା ଖାଉଥିଲେ ଲାଗଇ ପିତା ।୦।

ଇନ୍ଦ୍ର—ବଡ଼ ଭୟଙ୍କର ସତେ ବ୍ରହ୍ମହତ୍ୟା ରୂପ
କଣ୍ଟା ଜିଭ, ଲୋମ ଦେହ, ନିଆଁ ପରି ଆଖି
ମୋ ଆଗରେ କରୁଅଛି କେମ ତାଣ୍ଡବ ନୃତ୍ୟ
କିପରି ମିଳିବ ମୁକ୍ତି କୁହନ୍ତୁ ନାରଦ ।

ନାରଦ –(ଗୀତ)   ଦିନେ ସ୍ୱର୍ଗରେ ନାରାୟଣ,
ଶିବଙ୍କୁ କରିଲେ ପ୍ରେରଣ ।
ମର୍ତ୍ତ୍ୟରେ ରହି ସେ ଦୁଃଖୀ ପାପୀଙ୍କର
ହରଣ କରନ୍ତି ସକଳ ଚିନ୍ତା ।୧।

ଇନ୍ଦ୍ର—ତେବେ—ସେଠାରେ କି ମୁହିଁ
ପଶିବି ଶରଣ ?

ନାରଦ—(ଗୀତ)   ତାଙ୍କୁ ସେବା କରିଲେ ତୁଷ୍ଟ
ଗଉତମୀ ହେବେ ସନ୍ତୁଷ୍ଟ
ତା' ଜଳରେ ତୁମେ
ଅଭିଷେକ ହେଲେ
ହେବ ଇନ୍ଦ୍ର ପୁଣି ଜଗତ ଜିତା  ।୨।

ଇନ୍ଦ୍ର—କପଟ ନ କରି ମୋତେ ଦେଖାଅ ସେ ସ୍ଥାନ
ଯହିଁ ଶିବ ବିରାଜିତ ଦୁଃଖୀଜନ ପାଇଁ ।

ନାରଦ—ଆସ ତେବେ (ଯନ୍ତ୍ର ସଙ୍ଗୀତ)
ଏଇଠାରେ ଶିବ ମନ୍ତ୍ର ଜପୁଥାଅ ବସି (ପ୍ରସ୍ଥାନ)
ନାରାୟଣ···ନାରାୟଣ···ନାରାୟଣ ।

ଇନ୍ଦ୍ର—ଯେତେଦିନ ନ ପାଇଛି ଆଶୁତୋଷ ବର···
ଶିବ ମନ୍ତ୍ର ଜପିବି ମୁଁ କରୁଛି ଶପଥ ।
ଓଁ ନମଃ ଶିବାୟ···ଓଁ ନମଃ ଶିବାୟ···

ଶିବ—(ଗମ୍ଭୀର କଣ୍ଠରେ) ଉଠ ବତ୍ସ ଆଖଣ୍ଡଳ !
ତୁଷ୍ଟ ହେଲି ତୁମ୍ଭ ତପସ୍ୟାରେ । ତୁମେ ମୋତେ ପୂଜିବାରୁ ମୁଁ ତୁମ୍ଭ ଈଶ୍ୱର । ତୁମର ନାମରେ ମୁହିଁ ହେବି ପରିଚିତ । ଆଖଣ୍ଡଳେଶ୍ୱର ନାମ ହୋଇବ ବିଖ୍ୟାତ ।

ଇନ୍ଦ୍ର—ବ୍ରହ୍ମ ହତ୍ୟା ପାପୁଁ ମୋତେ କରନ୍ତୁ ଉଦ୍ଧାର ।
ଶିବ—ଯାଅ ବତ୍ସ, ଗୌତମୀରେ ସ୍ନାନ କରି ସ୍ୱର୍ଗେ ଫେରି-
ଯାଅ । ଶାସନ କର ନିର୍ଶ୍ଚିନ୍ତେ ଦେବକୁଳ ହିତେ ।
ଇନ୍ଦ୍ର—ଧନ୍ୟ ହେଲି । ଧନ୍ୟ ହେଲି ପ୍ରଭୁ ଆଖଣ୍ଡଳେଶ୍ୱର
ତବ ନାମ ଚିରଦିନ ଘୋଷିବ ଜଗତ । (ଯନ୍ତ୍ର ସଙ୍ଗୀତ)

## ପଞ୍ଚମ ଦୃଶ୍ୟ

ଚେମି—(ପ୍ରବେଶି) କୁଆଡ଼େ ଗଲ୍କି ଆଉ··· ?
ସତରେ ଏ ମରଦ ଜାତଟା ଏଇଆ ।
'କାମ ଥିବାଯାଏ ଲସର ପସର,
କାମ ସରିଗଲେ କିଏ ବା କାହାର' ।
ଆଉ ପାଚିରେ ଯାତରା ହବ ବୋଲି ଗାଁ ଯାକ ଲୋକ
ଉଠି ଗଲେଣି । ମୋତେ ଟିକିଏ ସାଙ୍ଗରେ ଯାତରା
ଦେଖେଇ ନବ ବୋଲି କେତେ ନାକରା ବାହାର
କଲିଣି । ସଞ୍ଜକୁ ଆସିବ କହି ଶେଷକୁ ମୋତେ···
(କାନ୍ଦିବା ବାହାନା)
(ଟିକେ ରହିଯାଇ) ଆଲୋ—ଆଲୋ ମୁଁ କାନ୍ଦୁଛି
କାହିଁକି ? ମୋର କ'ଣ ହୋଇଯାଇଛି କି ? ମୋଠୁଁ
କ'ଣ ଏ ଗାଁ ମାଇପେ ବେଶୀ ସୁନ୍ଦରୀ, ନା ବେଶି କାମ
କଲାବାଲି ? ଆଲୋ—ମୁଁ ଯଦି ଡିଙ୍କି ଉପରେ ଗୋଡ଼
ଦେଇଛି, ପାଞ୍ଚ ଭରଣ ଧାନ କୁଟିଦେବି । ଆଉ
ଲିପାପୋଛା, ଦାଣ୍ଡ ଖରକା, ଗୋବର କଡ଼ା, ପାଣି

ବୃନ୍ଦାରେ ମୋତେ କଏ ଝଟିଯିବ ? ମୋ ଆଗକୁ ଆସୁ ତ ? ଆଉ ମୋ ରୂପ···ହେଃ···ହେଃ···(ହସି) ଏଇ ରୂପ ଯୌବନକୁ ଦେଖି ଜମିଦାର ବାବୁ ନଜର ତରକି ଯାଇଥିଲେ ତ ? ଏ ଗାଁର ଟୋକାଠୁଁ ବୁଢ଼ା-ଯାଏ ମୋତେ ସବୁ ଝାକଥିଲେ ପରା । ଏକଥା କ'ଣ ମୁଁ ଜାଣେନାଁ ? (ସକେଇ ସକେଇ)

ଆଜି ସିନା ମୋର ବଅସ ଖସି ଯାଇଛି, ନ ହେଲେ ଏ ଅଇଁଠାଖିଆ ଜମିଦାରଙ୍କ ହଳିଆ ଅନନ୍ତା ତଳେ ରହନ୍ତି ? (ଟେକ ଉଠି) ହେଇ ଦେଖ୍ କାନ୍ଧରେ ଗଣ୍ଠି ପକେଇ ଏଇଠି ବସି ରହିଲି । କେତେବେଳେ ସେ ଆସୁଛି ଆସୁ । ଆଜି ତା'ର ଦିନେକୁ ମୋର ଦିନେ ।

ଅନନ୍ତା—(ଖଣ୍ଡି କାଶ ମାରି) ଆଲୋ ରେମି । ଯାତରା ଦେଖି-ଯିବୁ ପରା । ହେଇ ଦେଖ, ତୋ ପାଇଁ କେମିତିକା ଶାଢ଼ୀ ଆଣିଛି, ବୃଗିଛୁ କଲେ, ତୋ ପାଇଁ ପରା ଜମିଦାର ବାବୁଙ୍କୁ କହି ଏ ଶାଢ଼ୀ କଣିଛି ।

[ଗୀତ] ଆଲୋ ମୋର ଚମ୍ପା କଢ଼ି,
ତୋ ପାଇଁ ଆଣିଛି ସିଲକ ଶାଢ଼ୀ ଲୋ--
ଫୁଲ୍ ପଡ଼ୁଛି ଧାଡିକ ଧାଡ଼ି ମୋ ରେମି ଲୋ ।୦।
ଯିବୁ ତୁ ଯାତରା ଦେଖି,
ତୋ ରୂପରେ ଆଖି ରହିବ ଲଖି ଲୋ—
ପାନ କଳରେ ଥିବୁଟି ଯାକି ମୋ ରେମି ଲୋ ।୧।

ରେମି—ଥାଉ, ଥାଉ ସେ ସୁହାଗ । ଏତେ ବେଳଯାଏ କୁଆଡ଼େ ଯାଇଥିଲୁ । ଏତେ ହିନସ୍ତା କରିବାର ଯଦି ତୋର ଇଚ୍ଛା, ମୋତେ ବାହା ହେଉଥିଲୁ କାହିଁକି

ଅନନ୍ତ—[ଗୀତ] ଛାଡ଼ ରାଗ ଅଭିମାନ,
ଯାତରାରେ ଦେବି କରନ୍ଦା ପାନ ଲୋ—
ମନ ହେବ ଖାଲି ଛନ ଛନ ମୋ ରେମି ଲୋ ।

ରେମି—ସତରେ ଏ ଶାଢ଼ୀ ମୋ ପାଇଁ ଆଣିଛୁ ନା ? ଘର କଡ଼ିଆ ହେଉଛୁ । ସତରେ ତୁ ଏତେ ଭଲ ମୁଁ ଜାଣି ନ ଥିଲି । [କାନ୍ଦବା ବାହାନା] ମିଛରେ ଏ ହଁଆଁ ଲଗା ତୁଣ୍ଡରେ କେତେଗୁଡ଼ା ଗାଳି ନ ଦେଲି ? ହେ ଭଗବାନ, ମୋ ସ୍ୱାମୀକୁ କୋଟି ପରମାୟୁ ଦେଇ ଥା ।

[ଗୀତ] ତୁହି ମୋ ମନ୍ତ ଦେବତା,
ଯାହା ମୁଁ କହୁଛି ଖରାପ କଥାରେ—
ସବୁ ଭୁଲିବୁ ଝାଇ ମୋ ମଥା-ଅନନ୍ତାରେ ।୦।

ଅନନ୍ତା—[ଗୀତ] ତୁହି ମୋର ରଙ୍ଗବଣ୍ଟା,
ତୋ ସାଥିରେ ଆଜ କାଟିବି ରାତ ଲୋ—
ତୋର ପ୍ରୀତ ପସରାରେ ମାତ ମୋ ରେମି ଲୋ ।

ରେମି—ଥାଉ ମ ! ସାଆନ୍ତେ ଆସି ଯିବେଟି ।

## ଷଷ୍ଠ ଦୃଶ୍ୟ

[ଜମିଦାର ସମର ସିଂଙ୍କ କୋଠରୀ]

ସମର ସିଂ—କ'ଣ ପଣ୍ଡିତେ କେବେ ଶୁଝୁଛ କ ?

ଜ୍ୟୋତିଷ—ଓଁ ତତ୍‌ସତ୍ , ଓଁ ତତ୍‌ସତ୍ । ଖଡ଼ି ପକେଇ ଯାହା ଜାଣିଲି—ଏଇଟା ଆଜ୍ଞା ମାହେନ୍ଦ୍ର ବେଳା । ଆଜ ହେଲା କୁମ୍ଭ ମାସର ପ୍ରଥମ ସୋମବାର । ମହାପ୍ରଭୁ ଶିବଙ୍କର

ଆଜି ଶୁଭ ଜନ୍ମଦିନ । ସବୁ ଦିଗରୁ ଭଲ-ମଙ୍ଗଳ । ବିଳମ୍ବ ନ କରି ଆଜି ହଳ କାମଟା ଆରମ୍ଭ କରନ୍ତୁ ଆଜ୍ଞା । ଓଁ ତତ୍‌ସତ୍, ଓଁ ତତ୍‌ସତ୍ ।

ସମର ସିଂ—ଆରେ ଅନନ୍ତା—[ଦୀର୍ଘ ଡାକ] ଅନନ୍ତା !

ଅନନ୍ତା—[ଭିତରୁ] ଆସୁଛି ଆଜ୍ଞା ।

ସମର ସିଂ—ଆକ୍ଷା ଅନନ୍ତା !

ଅନନ୍ତା—ଆଜ୍ଞା ହେଉ ସାଆନ୍ତେ ।

ସମର ସିଂ—ଆଜି ସେ ପାଠକୁ ହଳ ଯିବ ।

ଅନନ୍ତା—କେଉଁ ପାଠକୁ ଆଜ୍ଞା ?

ସମର ସିଂ—ସେଇ ଯେଉଁ ଖାଲୁଆ ପାଠ । ବର୍ଷାଦିନେ ତ ପେଟେ ଲେଖା ପାଣି ଠିଆ ହେଲା । ଆଗତୁରା ହଳ କରି ଦେଇଥା । ଗହମ କି ଧାନ ବୁଣିଦେବା ।

ଅନନ୍ତା—ଆଜି ଏ କି କଥା କହୁଛନ୍ତି ଆଜ୍ଞା ? କେଉଁ ଯୁଗରୁ ଅପନ୍ତରା ହୋଇ ସେ ପାଠ ପଡ଼ି ରହିଛି । ସେଠାକୁ ସମସ୍ତେ ଠାକୁର ପାଠ କହୁଛନ୍ତି । ଆପଣ, ଧର୍ମ ପୁରୁଷ ହୋଇ ତାକୁ କେମିତି ଚାଷ କରିବାକୁ କହୁଛନ୍ତି ?

ଜ୍ୟୋତିଷ—ଆରେ ଏ ହଳିଆ—ତୁ ତ ଚାକର ଲୋକ, ମାଲିକେ ଯାହା କହିବେ, ସେଇଆ କରିବୁ । ଏତେ କଥାରେ ମୁଣ୍ଡ ଖେଳେଇବା କ'ଣ ଦରକାର ? ଓଁ ତତ୍‌ସତ୍, ଓଁ ତତ୍‌ସତ୍ ।

ଅନନ୍ତା—ମୁହଁ ସମ୍ଭାଳି କଥା କୁହ ପଣ୍ଡିତେ, ଏ ଖଡ଼ି ବାଡ଼ିଲି ପାଞ୍ଜି କଥା ହେଇନାହିଁ ଯେ, ମିଛ-ସତ ଭଣ୍ଡି ଦେଇ ଚାଲିଯିବ, ବୁଝିଲ ?

ଜ୍ୟୋତିଷ—ଶୁଣୁଛନ୍ତି ସାଆନ୍ତେ  ଆଜିକାଲି ଗୁଡ଼ିକର ବାକର-
ଗୁଡ଼ାଙ୍କୁ ବ ମଣିଷ କଥା ପଦେ କହିପାରିବ ନାହିଁ ।
କଥାରେ କହନ୍ତି—ମୂଳରୁ କଟିଛି ନୁହଁ—ଗୁଳରେ କାଉ
ବସେଇ ଦେଉନାହିଁ । ଓଁ ତତ୍‌ସତ୍, ଓଁ ତତ୍‌ସତ୍ ।

ସମର ସିଂ—ଆରେ ଅନନ୍ତା, ଏମିତି ଝଗଡ଼ା ଲଗେଇଥିବୁ ନା
କ'ଣ ? ଯା' ତୁ ପାଟକୁ ହଳ ନେଇ ଯା—ଚେମିକୁ
କହିବୁ ଟିକେ ପାଣି ନେଇଯିବ ।

ଜ୍ୟୋତିଷ—ମୁଁ ଗୁଲିଲି ସାଆନ୍ତେ । ମୋ ବଦାକଟା······
ଓଁ ତତ୍‌ସତ୍ ।

ସମର ସିଂ—ତମେ ସଞ୍ଜକୁ ଆସ ।
ଆ—ଅନନ୍ତା ଶୀଘ୍ର ପାଟକୁ ଯିବୁ— (ଯନ୍ତ୍ର ସଙ୍ଗୀତ)

॥ ଅନନ୍ତା ପାଟରେ ହଳ କରୁଥିବାବେଳେ ଗୀତ ॥

[ଗୀତ]  ମୁହିଁ ଜମିଦାର ହଳିଆ ଭାଇରେ—
ଅନନ୍ତା  ମୋହର ନାମ
କାଳିଆ ବଳିଆ ବଳଦ ହଳକ—
ସତେ ମୋ ଜୀବନ ଧନରେ
ମୋର ଚେମି ଘରଣୀ,
ମନ ଜାଣିରେ ମନ ଜାଣି—
ସେତ ଦେଉଛି ଶାଗ ତୋରାଣି ।୦।

[କଥା] ଗୁଲ, କାଳିଆ, ବୁଲିଆ—

[ଗୀତ] ଆଜ ତ କଟାଣ କାଲକୁ ଦୋହର—
ପହରକୁ ଦେବ ମଇ,

କାଳିଆ ବଳିଆ ସାହା ହୋଇଥିଲେ—
ବହନ ଦେବ ଟକାଇରେ
ଯେବେ ବରଷା ହେବ,
ହସୁଥିବରେ ହସୁଥିବ,
ଏଇ ଠାକୁର ପାଠ ନାଚବରେ
ଯେବେ ବରଷା ହେବ ।୨।

[ଘଡ଼ଘଡ଼ ବଜୁଳି ମାରିବା ଶବ୍ଦ ଓ ଭୟଙ୍କର ଡ଼ୋ ଶବ୍ଦ । କୁନ୍ଥାଇଲା ପରି ଆଃ-ଆଃ ରଡ଼ି ରହିବ]

ଅନନ୍ତା—ଏ କ'ଣ ହେଲା ? ମୋ ଲଙ୍ଗଳରେ କ'ଣ ଏମିତି ବାଜିଲା । ମୋ ମୁଣ୍ଡ ଘୁରେଇ ଦେଉଛି । ଏ ସବୁ ମୁଁ କ'ଣ ଦେଖୁଛି । ହେ ଭଗବାନ, ମୋତେ ରକ୍ଷାକର । ଆଃ-ଆଃ [ପଡ଼ିଯିବା]

ଜ୍ୟୋତିଷ—[ଦୂରରୁ ଦୀର୍ଘ ଡାକ] ଆରେ ଅନ-ନ୍ତା, କ'ଣ ହେଲା କିରେ ?
[ଧୀରେ] ଟୋକାଟା ପଡ଼ିଗଲା ନା କ'ଣ ? ଯାଇ ଦେଖେ, ଆକାଶରେ ମେଘ ନାହିଁ, ପବନ ନାହିଁ । ଏମିତି ଅକାଳ ଚଡ଼କ ପଡ଼ିଲା । ହରି ଓଁ ତତ୍‌ସତ୍, ହରି ଓଁ…

ଜ୍ୟୋତିଷ—[ପାଖକୁ ଆସି] ଆରେ ଅନନ୍ତା—ଅନନ୍ତା । ଆରେ ଟୋକାର ତ ଚେତା ଚଇତନ ନାହିଁ । [ବ୍ୟସ୍ତ ହୋଇ] ମଣିଷ କ ଅଡୁଆରେ ପଡ଼ିଲା । ହରିଓଁ ତତ୍‌ସତ୍, ହରି ଓଁ….ଏସବୁ ମୁଁ କ'ଣ ଦେଖୁଛି ? ଏ ପାଠଟା ରକ୍ତମୟ, ମୁଁ ସ୍ୱପ୍ନ ଦେଖୁନାହିଁ ତ ? ବଳଦ ଦି'ଟାଙ୍କୁ ଫିଟେଇ ଦିଏ । ଏ କାଳିଆ ହ-ଚ-ଚ ଯା—ଏବେ ।

ହରିଓଁ ତତ୍‌ସତ୍, ହରିଓଁ...ମୋତେ ତ କିଛି ବାଟ ଦେଖାଯାଉ ନାହିଁ । ଯାଉଛି ଜମିଦାର ବାବୁଙ୍କୁ ଖବର ଦେବି । ହରିଓଁ ତତ୍‌ସତ୍—ହରିଓଁ...

—ଯନ୍ତ୍ର ସଙ୍ଗୀତ—

ଜ୍ୟୋତିଷ—[କବାଟରେ ଆଘାତ କରି] ଜମିଦାର ସାଆନ୍ତେ ! ଜମିଦାର ବାବୁ, ମାଆ—କିଏ ଅଛ କବାଟ ଖୋଲ । ବଡ଼ ବିପଦ ପଡ଼ିଛି ବାବୁ ।

ସମର ସିଂ—(କବାଟ ଖୋଲି) କ'ଣ ହେଲା ପଣ୍ଡିତ ପୁଅ ? ଏମିତି ଥରୁଛ କାହିଁକି ? କ'ଣ ହୋଇଛି କୁହ ।

ଜ୍ୟୋତିଷ—ହରିଓଁ ତତ୍‌ସତ୍—ହରିଓଁ...

(ଗୀତ) କି କହିବି ସାଆନ୍ତେ ଆହା,
ଠାକୁର ପାଟରେ ଦେଖିଲି ଯାହା ।ଠା
ବୁଲି ଯାଉଥିଲି ହାଟକୁ,
ଗୃହିଁ ଦେଲି ଖାଲି ପାଟକୁ
ଅକାଳ ଚଡ଼କ ପଡ଼ିଲା ପାଟରେ—
ମେଘ ଘଡ଼ଘଡ଼ ତ୍ରାହିକୁ ତ୍ରାହି ।ଠା

ସମର ସିଂ—ଏ କ'ଣ କହୁଛ ପଣ୍ଡିତ ପୁଅ ? ଅନନ୍ତାର କିଛି ହୋଇନାହିଁ ତ ?

ଜ୍ୟୋତିଷ—(ଗୀତ) ଭାଙ୍ଗି ପଡ଼ିଅଛି ଲଙ୍ଗଳ,
ଫିଟେଇ ଦେଲି ମୁହିଁ ହଳ ।
ଅନନ୍ତା ପଡ଼ିଛି ଚିତ୍‌କାତ୍ ହୋଇ—
ନାହିଁ ତା'ର ଚେତା ନାହିଁ କେ ସାହା ।ଠା

ସମର ସିଂ—ପଣ୍ଡିତେ— ।

ଜ୍ୟୋତିଷ—ଶୁଣନ୍ତୁ ଆଜ୍ଞା । ଖାଲି ସେତିକ ନୁହେଁ ।

ଚେମି—(ବ୍ୟସ୍ତରେ) କ'ଣ ହେଉଛି, କ'ଣ ହେଉଛି ମୋ ଅନନ୍ତାର । ପଣ୍ଡିତେ ମୋତେ ଆଗ କୁହ ।

(ବାହୁନି କାନ୍ଦିବା)

ସମର ସିଂ—ରହ ରହ ଚେମି । ପଣ୍ଡିତ ପୁଅ କ'ଣ କହୁଛି ଶୁଣ ।

ଚେମି—ମୋ ସଂସାର ବୁଡ଼ିଗଲା ଜମିଦାର ବାବୁ । ଏଇ ପଣ୍ଡିତ କୁଳବୁଡ଼ା ତାକୁ କ'ଣ କରି ଦେଇଥିବ । ଆଜି ସକାଳେ ତା' ସାଙ୍ଗରେ ତ ଝଗଡ଼ା କରିଥିଲି ଆଉ—। ଏ ବଂଶବୁଡ଼ା ନାଆକ ମୋ ସଂସାର ସାରିଦେଲା ଲୋ—ମାଆ, ମୁଁ କାହାକୁ ନେଇକି ବଞ୍ଚିବି ଲୋ ମାଆ । (ବାହୁନି କାନ୍ଦିବା)

ସମର ସିଂ—ଏ ଚେମି, ତୁ ଚୁପ୍ ରହ । ପଣ୍ଡିତ ପୁଅ, ସେ କଥାରେ କାନ ଦିଅନା, ଆଉ କ'ଣ ହେଉଛି କୁହ ।

ଜ୍ୟୋତିଷ—(ଗୀତ) ପାଟିଭିତରି ଅଛି ରକତେ,
ବାକଲେ ଜେ କାନ୍ଦେ ଯେମନ୍ତେ
ଦେଖିଲି ସିନା ମୁଁ ନ ଦେଖିଲି ଶଜ—
ଆଖିକୁ ବିଶ୍ୱାସ ନ ହୁଏ ତାହା ।୦।

ଚେମି—ସାଆନ୍ତେ ! ମୋତେ ଅନନ୍ତା ପାଖକୁ ନେଇଚାଲ ।

ଜ୍ୟୋତିଷ—ହଁ ବାବୁ, ଆପଣେ ବି ଚାଲନ୍ତୁ । ହରିଓଁ ତତ୍‌ସତ୍, ହରିଓଁ...

ସମର ସିଂ—ଟେମି, ବନା, ଶୁକା ଆଉ କିଏ ଦାଣ୍ଡରେ ଅଛନ୍ତି ସମସ୍ତଙ୍କୁ ଡାକ, ଖାଲ ପାଖକୁ ସମସ୍ତେ ଚାଲ । ଚାଲ ପଣ୍ଡିତ ପୁଅ ।

ଟେମି—ଯାଉଛି ବାବୁ । (ପ୍ରସ୍ଥାନ)

—ଯନ୍ତ୍ର ସଙ୍ଗୀତ—

ଜ୍ୟୋତିଷ—ଏଇଟିକି ଆସନ୍ତୁ ଆଜ୍ଞା, ହେଇ—ସେ ଆଃ-ଆଃ ରଡ଼ି ସେଇମିତି ଶୁଭୁଛି ।

ସମର ସିଂ—ସତେ ତ କି ବିଚିତ୍ର କଥା ଏ ? ଚିହ୍ନୁଁ ଚିହ୍ନୁଁ ରକ୍ତ ସବୁ କୁଆଡ଼େ ଉଭେଇ ଗଲା ।

ଟେମି—ମୋ ଅନନ୍ତା କାହିଁ ?

ସମର ସିଂ—ଆଲୋ ଟେମି ! ତୁ ଶୁକା, ବନାଙ୍କ ସାଙ୍ଗରେ ମିଶି ଅନନ୍ତାକୁ ଘରକୁ ଟେକି ନେଇଯା । ତାକୁ ଟିକେ ଶେକା-ଶେକି କରି, ଗରମ ଦୁଧ ଗିଲାସେ ଖଣ୍ଡେ ପିଇବାକୁ ଦେ । ସବୁ ଠିକ୍ ହୋଇଯିବ ।

ଜ୍ୟୋତିଷ—ଏଇଠି ଦେଖନ୍ତୁ ଆଜ୍ଞା । ଲଙ୍ଗଳଟା ଗୋଟାଏ ବଡ଼ ପଥର ମାନେ---ମୁଗୁନି ପଥରରେ ବାଜିଛି । ହେଇ ମୁଁ ମାଟି ଖୋଳି ଦେଉଛି ଦେଖ ।

ସମର ସିଂ—ଚୁପ ପଣ୍ଡିତ ପୁଅ । ଏ ମୁଗୁନି ପଥର ନୁହେଁ, ଏତ ମହାଦେବଙ୍କ ଲିଙ୍ଗ । ମଥାରେ ଲଙ୍ଗଳ ବାଜି ରକ୍ତ ଝରୁଛି ।

ଜ୍ୟୋତିଷ—ଲୋ—ବୋପା ଲୋ—ପାପ । ପାପ ଆଜ୍ଞା ।

ସମର ସିଂ—ଉଠିଆସ ପଣ୍ଡିତ ପୁଅ । ଆମେ ମହାପାପ କରିଛନ୍ତି । ଚାଲ ଗ୍ରାମବାସୀଙ୍କୁ ଡାକି କୀର୍ତ୍ତନ କରିବା ।

ଜ୍ୟୋତିଷ ଓ ସମର ସିଂ—ହେ ପ୍ରଭୁ ତୁମେ ଆମର ଅପରାଧ
କ୍ଷମାକର । ତୁମର ଇଚ୍ଛା ପୂରଣ ହେଉ ପ୍ରଭୁ, ଆମକୁ
ବୁଦ୍ଧି ବତାଇ ଦିଅ । କ'ଣ କରିବୁ ଆଦେଶ ଦିଅ ପ୍ରଭୁ ।

(ଯନ୍ତ୍ର ସଙ୍ଗୀତ)

।। ନିଶା ଗର୍ଜୁଛି ।।

ସମର ସିଂ—ରାତି ଆସି ପାହାନ୍ତା ହେଲଣି । ଆଖିକୁ ମୋର
ନିଦ ଆସୁନାହିଁ । ଆଜି ଏ ସବୁ କ'ଣ ଘଟିଗଲା ? ହେ-
ପ୍ରଭୁ ଭଗବାନ, ମୋତେ ଉପାୟ ବତେଇ ଦିଅ । ମୁଁ
କ'ଣ କରିବି କିଛି ଜାଣି ପାରୁନାହିଁ । ମୁଁ ଅଧମ, ପାପୀ,
ଅଜ୍ଞାନ । (ହାଇ ମାରିବା ଶବ୍ଦ)

ଶିବ—(ଅନ୍ତରାଳରୁ) ଭକ୍ତ ନିଳାଦ୍ରି ସମର ସିଂ । ମୁଁ ଆସିଛି,
ଜାଗ୍ରତ ହୁଅ । ମୁଁ ତୁମକୁ ମୋର ପରିଚୟ ଦେଉଛି-ଶୁଣ ।

(ଗୀତ) ଶୁଣ ଭକତ ନିଳାଦ୍ରି ସମର,
ପରିଚୟ ଦେଉଛି ମୁଁ ମୋହର ।
ସତ୍ୟ ଯୁଗ କଥା କହୁଛି ଶୁଣ,
ବିଷ୍ଣୁ ମର୍ତ୍ତ୍ୟକୁ କଲେ ପ୍ରେରଣ ।
ଦୁଃଖୀ, ରଙ୍କି, ରୋଗୀ, ପାପୀ କାରଣେ,
ଯୋଗ କରୁଥିଲି ମର୍ତ୍ତ୍ୟ ଭୁବନେ ।
ଇନ୍ଦ୍ର ମୋହର ଶରଣ ପଶିଲା,
ବ୍ରହ୍ମହତ୍ୟା ପାପୁ ମୁକ୍ତ ହୋଇଲା ।

ସମର ସିଂ—ତା'ପରେ କ'ଣ ହେଲା ପ୍ରଭୁ !

ଶିବ—(ଗୀତ) ସତ୍ୟ ଯୁଗରୁ ତ୍ରେତୟା ଯୁଗକୁ
ପୂଜା ପାଉଥିଲି କାଳ କାଳକୁ ।
ବାଣାସୁର ସେ ଅସୁର ନନ୍ଦନ,
ମୋତେ ପୂଜି ହୋଇଲା ବଳୀୟାନ ।
ତା'ର ଅପଘାତ ବୃଦ୍ଧି ହୋଇଲା
ମୋତେ ମାଟି ତଳେ ନେଇ ଥୋଇଲା ।
ମାଟି ତଳେ ମୁହିଁ ଥିଲି ଯୋଗରେ
ଆଜି ଜାଗିଛି ଲିଙ୍ଗଳ ମୁନରେ ।୦।

ସମର ସିଂ—ମୋତେ କ୍ଷମା କର ପ୍ରଭୁ ।
ମୁଁ କ'ଣ କରିବି ମୋତେ ଉପାୟ ବତାଇ ଦିଅ ।

ଶିବ—(ଗୀତ) ମୋର ଶରୀରେ ବହୁତ ଯନ୍ତ୍ରଣା,
ମୋର ଆସ୍ଥାନ କରିବୁ ସ୍ଥାପନା ।
ମୋର ନାମ ଆଖଣ୍ଡଳ ଈଶ୍ୱର,
ଦୁଃଖ ହରିବି ମୁଁ ଦୁଃଖୀ ଜନର ।୦।

(କଥା) ଗୁଲିଲି ମୁଁ ତେବେ ।
ସକାଳେ ଭେଟିବୁ ଲୁହ ପଣ୍ଡିତ ବ୍ରାହ୍ମଣ
ବିଧିମତେ ପୂଜା ପାଠ କରିବେ ସେ ଆସି ।

(ପ୍ରସ୍ଥାନ)

ସମର ସିଂ—ଗୁଲିଯାଅନା ପ୍ରଭୁ ।
ଚିତ୍କାର କରି) ଆଲୋ ଚେମି ।
ମୁଁ ଏ କି ସ୍ୱପ୍ନ ଦେଖିଲି ?
ଆଲୋ ଚେମି, ମାଆକୁ ଡାକ ।

ଆଜ ଠାକୁର ନଜେ ଆସିଥିଲେ ।
ଜୟ ଆଖଣ୍ଡଳେଶ୍ୱର
ଜୟ ଆଖଣ୍ଡଳେଶ୍ୱର ।

(ଯନ୍ତ୍ର ସଙ୍ଗୀତ)

(କବାଟରେ କରାଘାତ)

ସମର ସିଂ—ଆଲୋ ନେମି, କବାଟ ଖୋଲି ଦେ ତ ।
କଏ ଡାକୁଛି ଦେଖ ।

ନେମି—(କବାଟ ଖୋଲି) କାହାକୁ ଖୋଜୁଛ ଗୋସେଇଁ ।

ବ୍ରାହ୍ମଣ—ମହାପାତ୍ରେ ଘରେ ଅଛନ୍ତି ?

ନେମି—ହଁ—ଏଇତ ସେ ଆସିଗଲେଣି ।

ସମର ସିଂ—ଜୁହାର ଗୋସେଇଁ । ଆପଣଙ୍କ ପରିଚୟ ?

ବ୍ରାହ୍ମଣ—କାଲି ସ୍ୱପ୍ନରେ ଆଖଣ୍ଡଳେଶ୍ୱର ମୋତେ ଆଦେଶ ଦେଇଛନ୍ତି । ତାଙ୍କର ଆସ୍ଥାନ ସ୍ଥାପନା କରିବ । ଏହି ସ୍ଥାନ ହେବ ଏକ ପବିତ୍ର ତୀର୍ଥ । ଏଠିକାର ମାଟି ହେବ ମହୌଷଧି ପାଦୁକା ।

ସମର ସିଂ—ତେବେ ଚାଲନ୍ତୁ, ଆଗ ପ୍ରଭୁଙ୍କ କାମ ଆରମ୍ଭ କରିବା । ଆଲୋ ନେମି, ଗାଁ ବାଲାଙ୍କୁ ଡାକ । ସମସ୍ତେ ପାଟକୁ ଚାଲନ୍ତୁ ।
କୀର୍ତ୍ତନ, ହରିବୋଲ, ହୁଳହୁଳିରେ ପାଟ ଉଚ୍ଛୁଳି ପଡ଼େ ।
ସେଇଠି ଠାକୁର ପ୍ରତିଷ୍ଠା ହେବେ ।

(ଘଣ୍ଟା, ଖୋଳ, ଶଙ୍ଖ, ହୁଳହୁଳି)

ସମର ସିଂ—ବୁଝିଲେ ଗୋସେଇଁ ଏବେ ବ ଘାଟରେ ଆଃ-ଆଃ-ରଡ଼ ଶୁଭୁଛି । ତେଣୁ ଏ ସ୍ଥାନର ନାମ ଆରଡ଼ ରହୁ ।

ବ୍ରାହ୍ମଣ—ତାହାହିଁ ହେଉ । ଏ ସ୍ଥାନ ଆଜିଠାରୁ ଆରଡ଼ ନାମରେ ବିଖ୍ୟାତ ହେଉ ।

(ବ୍ରାହ୍ମଣର ମନ୍ତ୍ରଧ୍ୱନି, ଘଣ୍ଟ, ଘଣ୍ଟା, ଶଙ୍ଖ, ହୁଳହୁଳି ଶବ୍ଦରେ ସ୍ଥାନଟି କମ୍ପି ଉଠିବ)

(ଅନ୍ତରାଳରୁ) (ଗୀତ)—(ମିଳିତ କଣ୍ଠ ହେଲେ ଭଲ)

ଅପୂର୍ବ କାହାଣୀ ଏ
ଶୁଣ ଭାଇ ଭଉଣୀ
ଶୁଣି ଏ କାହାଣୀ ତରିଯାଏ ପ୍ରାଣୀ
ଦୁଃଖୀ ତା'ର ଦୁଃଖ ନ ପାରେ ଜାଣି ।୧।
ଆରଡ ଧାମରେ ଜଙ୍ଗଲ ମୂନରେ—
ବିଜେ କରି ଅଛନ୍ତି ବାବାମଣି
ଅନ୍ଧ ତା' ନୟନ କାଲି ପାଏ କାନ—
ପଙ୍ଗୁ ପାଦ ପାଇ ଚାଲୁଛି ପୁଣି ।୧।
ଅପୁତ୍ରିକ ନର ପାଇଲା କୁମର
ରୋଗୀ ଭଲ ହୁଏ କେତେ କେଜାଣି
ପଞ୍ଚାନନ ମେଳା ହୃଦେ ଯେ ଚନ୍ଦ୍ରିଲା—
ସବୁ ଦୁଃଖ ତା'ର ହୋଇଲା ପାଣି ।୨।
କନିକା ନୃପତି ରଖିଲେ କିରତି
କି ସୁନ୍ଦର ଦେଉଳ ସେ ନିର୍ମାଣି,

ମଣିଙ୍କ ପାଦୁକା ଥିଲେ ନାହିଁ ଶଙ୍କା
ସବୁ ଅଉଷଧ ସେ କୁଣ୍ଡପାଣି ।
ବିଶ୍ୱାସ ଭକତି ଏ ଦୁଇ ଶକତି—
ଆରଡ଼ ଧାମରେ ଗାରୁଡ଼ ନାହିଁ । ।୩।



## ସ ମା ପ୍ତ

ମୁଦ୍ରଣ—ପ୍ରକାଶ ପ୍ରିଣ୍ଟର୍ସ, କଟକ-୯